**ଉପୋଦ୍ଘାତ:      ଛନ୍ଦ କଣ?**

ସମସ୍ତେ ବୁଝିଲା ଭାଷାରେ ଉତ୍ତର ଶୁଣନ୍ତୁ ।

କାବ୍ୟଲିଖରେ ଶୃଙ୍ଖଳାର ନାମ ଛନ୍ଦ । ତେଣୁ ଛନ୍ଦଃଶାସ୍ତ୍ରକୁ କାବ୍ୟର ବ୍ୟାକରଣ ବୋଲି କୁହା ଯାଏ । ଏହି ଶାସ୍ତ୍ର ପିଙ୍ଗଳ ମୁନିଙ୍କ ରଚିତ ।) ଛନ୍ଦରେ ଥାଇ ପାରେ ଅକ୍ଷରସଜ୍ଜାର ଶୃଙ୍ଖଳା ବା (ଲଘୁ-ଗୁରୁ) ବର୍ଣ୍ଣସଜ୍ଜାର ଶୃଙ୍ଖଳା ଅଥବା ବିଭିନ୍ନ ପାଦରେ ମାତ୍ରାବିନ୍ୟାସର ଶୃଙ୍ଖଳା ।

ଛନ୍ଦ ମୁଖ୍ୟତଃ ଦୁଇ ପ୍ରକାର - ବୈଦିକ ଛନ୍ଦ ଓ ଲୌକିକ ଛନ୍ଦ ।

୧- ବୈଦିକ ଛନ୍ଦଗୁଡିକରେ କେବଳ ଅକ୍ଷରସଂଖ୍ୟାର ନିୟମ ତଥା ଶୃଙ୍ଖଳା ରହି ଥାଏ । ଏହି ଛନ୍ଦଗୁଡିକ ବେଦ ବାହାରେ କୁତ୍ରାପି ଲେଖା ଯାଏ ନାହିଁ କି ଦେଖା ଯାଏ ନାହିଁ । ଏପରି କି ଆଦି କବି ବାଲ୍ମୀକି ମଧ୍ୟ ପଦେ ବି କବିତା ବୈଦିକ ଛନ୍ଦରେ ଲେଖି ନାହାନ୍ତି । ଏହାର ଆଦର, ପବିତ୍ରତା କେବଳ ବେଦରେ ।

୨- ଲୌକିକ ଛନ୍ଦ ବର୍ଣ୍ଣଶୃଙ୍ଖଳାରେ ଅଥବା ମାତ୍ରା ଶୃଙ୍ଖଳାରେ ଲେଖା ହୁଏ । ଏହା କିପରି ହୁଏ ଜାଣିବାକୁ କାବ୍ୟରେ ବର୍ଣ୍ଣ ଓ ମାତ୍ରା କଣ ଜାଣିବା ପ୍ରୟୋଜନ ।

ଲଘୁ ଓ ଗୁରୁ ବର୍ଣ୍ଣର ଭେଦ ଜାଣି ନିଅନ୍ତୁ । ଯାହା ଉଚ୍ଚାରଣରେ ଅଳ୍ପ ସମୟ ନିଏ ତାହା ଲଘୁ ଓ ଅଧିକ ସମୟ ନେଉଥିବା ବର୍ଣ୍ଣ ଗୁରୁ । ଏହି ଉଚ୍ଚାରଣ ସମୟକୁ ମାତ୍ରା କୁହା ଯାଏ । ଏଥିରେ ଅନୁପାତ ହେଲା ଉଚ୍ଚାରିତ ହେବାକୁ ଲଘୁ ବର୍ଣ୍ଣ ଏକ ମାତ୍ରା ଓ ଗୁରୁ ବର୍ଣ୍ଣ ଦୁଇ ମାତ୍ରା ସମୟ ନିଅନ୍ତି ।

ଏହି ଛ ପ୍ରକାର ବର୍ଣ୍ଣ ଗୁରୁ:

ସମସ୍ତ ଦୀର୍ଘସ୍ୱର (ଆ ଈ ଊ ୠ ଏ ଐ ଓ ଔ) ।

ସାନୁସ୍ୱାର ବା ଆନୁସ୍ୱାରଯୁକ୍ତ ବର୍ଣ୍ଣ ।

ସବିସର୍ଗ ବା ବିସର୍ଗଯୁକ୍ତ ବର୍ଣ୍ଣ ।

ଯୁକ୍ତାକ୍ଷରର ପୂର୍ବସ୍ଥ ବର୍ଣ୍ଣ ।

ହଳନ୍ତକ ବର୍ଣ୍ଣର ପୂର୍ବସ୍ଥ ବର୍ଣ୍ଣ ।

ଏତଭିନ୍ନ ପ୍ରତି ପାଦର ଶେଷ ବର୍ଣ୍ଣକୁ ଲଘୁ ଥିଲେ ମଧ ଗୁରୁର ମାନ୍ୟତା ଦିଆ ଯାଇଥାଏ ।

ଏହା ବାଦ ସମସ୍ତ ବର୍ଣ୍ଣ ଲଘୁ । ସ୍ମରଣୀୟ ଯେ ବ୍ୟଞ୍ଜନ ବର୍ଣ୍ଣ (ଯଥା କ୍ ଖ୍ ତ୍ ମ୍ ସ୍ ଇତ୍ୟାଦି ସ୍ୱର ବର୍ଣ୍ଣର ସହାୟତା ବିନା ଉଚ୍ଚାରିତ ହେଇ ପାରନ୍ତି ନାହିଁ କି ଏଗୁଡିକର ମାତ୍ରା ନ ଥାଏ, ତେଣୁ ମାତ୍ରା ଶୂନ୍ୟ ବୋଲି ଗଣନା ହୁଏ ।

ଏହି ଲୌକିକ ଛନ୍ଦ ପୁଣି ଦୁଇ ପ୍ରକାର –

ବର୍ଣ୍ଣକ୍ରମର ଶୃଙ୍ଖଳାରେ ରଚିତ ଛନ୍ଦ ବାର୍ଣ୍ଣିକ ଛନ୍ଦ ଓ ମାତ୍ରାଗଣନଶୃଙ୍ଖଳାରେ ରଚିତ ଛନ୍ଦ ମାତ୍ରିକ ଛନ୍ଦ ନାମରେ ଅଭିହିତ ।

ବାର୍ଣ୍ଣିକ ଛନ୍ଦରେ ତିନିଟି ଲେଖା ଅକ୍ଷରର ସମଷ୍ଟି **(set)**କୁ ନେଇ ବିଭିନ୍ନ ଗଣ ନାମ ଦିଆ ଯାଇଛି । ଏହାର ପ୍ରତି ପାଦର ଲଘୁ ଓ ଗୁରୁବର୍ଣ୍ଣର କ୍ରମକୁ ବର୍ଣ୍ଣର ପ୍ରତୀକ ଆକାରରେ ଅଥବା ଗଣ ନାମରେ ବି ଲିପିବଦ୍ଧ କରା ଯାଇ ପାରେ । ଯଥା ସର୍ବଲଘୁ ଗଣ ବା **111**ର ନାମ ନଗଣ, **112** ସଗଣ **121** ଜଗଣ, **122** ଯଗଣ **211** ଭଗଣ, **212** ରଗଣ, **221** ତଗଣ ଓ ସର୍ବଗୁରୁ ବା **222**ର ନାମ ମଗଣ । (ଏଠାରେ **1** ଲଘୁ ବା ଏକମାତ୍ରିକ ବର୍ଣ୍ଣର ଓ **2** ଗୁରୁ ବି ଦ୍ୱିମାତ୍ରିକ ବର୍ଣ୍ଣର ପ୍ରତୀକ ।) ତେଣୁ ବାର୍ଣ୍ଣିକ ଛନ୍ଦକୁ ଗଣଛନ୍ଦ ମଧ୍ୟ କୁହା ଯାଏ ।

୨.୧- ବାର୍ଣ୍ଣିକ ଛନ୍ଦ: ଏହାର ପ୍ରତି ପାଦରେ ଲଘୁ ଓ ଗୁରୁବର୍ଣ୍ଣର କ୍ରମରେ ନିର୍ଦ୍ଧାରିତ ଶୃଙ୍ଖଳା ରହେ ଅର୍ଥାତ୍, ଲଘୁ ସ୍ଥାନରେ ଲଘୁ ଓ ଗୁରୁ ସ୍ଥାନରେ ଗୁରୁ ବର୍ଣ୍ଣ ଲେଖିବାକୁ ହୁଏ ।

୨.୨- ମାତ୍ରିକ ଛନ୍ଦ: ମାତ୍ରାବିନ୍ୟାସର ଶୃଙ୍ଖଳାରେ ରଚିତ ଛନ୍ଦ ହେଲା ମାତ୍ରିକ ଛନ୍ଦ । ଏଥିରେ ପ୍ରତି ପାଦର ମୋଟ ମାତ୍ରା ନିର୍ଦ୍ଧାରିତ ଥାଏ । ତାହା ଛଡା ଅନ୍ୟ କିଛି କିଛି ନିୟମ ବି ଯୋଡା ଯାଇ ଥାଇ ପାରେ । ଯଥା ଦୋହା ଛନ୍ଦରେ ପ୍ରଥମ, ତୃତୀୟ ପାଦରେ ଆର୍ଥାତ୍ ବିଷମ ପାଦରେ ମୋଟ ୧୩, ୧୩ ଏବଂ ଦ୍ୱିତୀୟ, ଚତୁର୍ଥ ପାଦରେ ଅର୍ଥାତ୍ ସମ ପାଦରେ ମୋଟ ୧୧, ୧୧ ମାତ୍ରା ରହେ । ତା ସହିତ ପ୍ରଥମ, ତୃତୀୟ ପାଦ ଆରମ୍ଭରେ

ଜଗଣ ରହିବା ନିଷିଦ୍ଧ ଓ ଦ୍ବିତୀୟ, ଚତୁର୍ଥ ପାଦ ଶେଷକୁ ଲଘୁ ବର୍ଣ୍ଣ ରହିବା ବିଧି ।

ଗ.୧- ସାର କଥା ହେଲା ଯାହା ବର୍ଣ୍ଣ କିମ୍ବା ମତ୍ରାର ଶୃଙ୍ଖଳାରେ ଲେଖା ହେଇ ନାହିଁ ତାହା ଛନ୍ଦ ନୁହେଁ । ଅକ୍ଷର ଗଣି ଗଣି ଶେଷ  ମିଶେଇ ଦେଲେ ଗୀତକବିତା ହେଇ ପାରେ, ଛନ୍ଦ ନୁହେଁ କି ଛନ୍ଦଃଶାସ୍ତ୍ର ତାକୁ  ଛନ୍ଦର ମାନ୍ୟତା ଦିଅନ୍ତି ନାହିଁ ।

ଏହି ପୁସ୍ତିକାରେ ଛନ୍ଦ

ଏ ହି ପୁସ୍ତିକାର ସମସ୍ତ ପଦ ଏକ ବାର୍ଣ୍ଣିକ ଛନ୍ଦରେ ରଚିତ । ଛନ୍ଦୋନାମ ବସନ୍ତତିଳକା ନାମାନ୍ତରେ ବସନ୍ତତିଳକମ୍ ।ଏହା୍ ବର୍ଣ୍ଣକ୍ରମ ହେଲା **221 211 121 121 22** ଓ ଅନ୍ୟ ଭାଷାରେ ଏହାର ଗଣକ୍ରମ ହେଲା ତଗଣ ଭଗଣ ଜଗଣ ଜଗଣ ଗୁଗୁ ଅର୍ଥାତ୍ ଚାରିଟି ଗଣ ପରେ ଦୁଇଟି ଗୁରୁ ବର୍ଣ୍ଣ – ଏହି ପରି ୧୪ଟି ବର୍ଣ୍ଣ ପ୍ରତି ଧାଡିରେ । ଯଦି ମୁଁ କୌଣସିଠି ଏହି ବର୍ଣ୍ଣସ୍ଥାପନରେ ତ୍ରୁଟି କରଗ ଥାଏ ତେବେ ସେଠାରେ ଛନ୍ଦୋଭଙ୍ଗ ହେଇଛି ଓ ସେହି ପଦଟି ଛନ୍ଦରେ ଗଣ୍ୟ ହେବ ନାହିଁ ।

ଉପକ୍ରମ:  ଅସରା ନିରାଶା

ଆଜନ୍ମ ଦେଖି ନୟନେ ବହୁ ଦ୍ୱୈଧ ଲୋକେ
ଏବେ ବସନ୍ତତିଳକା ରଚି ଛନ୍ଦ ସୂତ୍ରେ
ମା ଭାରତୀସୁତ କହେ ଶୁଣ ବନ୍ଧୁ ସାଥୀ
ଏ ମୋ ବିଷାଦମଥିତା ଅସରା ନିରାଶା **॥ 00**
**(ବା)** ଏ ମୋର ବିସ୍ମୟଭରା ଅସରା ନିରାଶା **॥**

କବିତା:  ସର୍ବଜନ-ଭୂତଳ-ଧର୍ମ-ଭାଷା

ଭାଷା ସମସ୍ତ ବସୁଧାର ଉଦାର ଧାରା
ଧର୍ମାର୍ଥ  ବୈଶ୍ୱିକ**,** ସୁଦିବ୍ୟ ସମସ୍ତ ଧର୍ମ **।**
ସୀମା ବିଭିନ୍ନ ନର ଆଙ୍କିଛି ଭେଦ ଭାବେ**,**
ମୋ ସ୍ୱୀୟ ସର୍ବଜନ-ଭୂତଳ-ଧର୍ମ-ଭାଷା **॥ 01**

କବିତା:  ମୂକସାକ୍ଷୀ

ତୁମ୍ଭଙ୍କୁ ସୁନ୍ଦର ଜଣା ଅଛି ଏହି ସତ୍ୟ
ତୁମ୍ଭେ ଅକର୍ମ କର**,** ଈଶ୍ୱର ମୂକ ସାକ୍ଷୀ **।**
ମିଥ୍ୟା ଅଧର୍ମ ପରପୀଡନ ଉଣ୍ଡି ମୌକା
ଯେତେ କଲେ ପ୍ରଭୁ ଉଖାଡି ନ ଥାନ୍ତି କିଞ୍ଚିତ୍ **॥ 02**

କବିତା:     ବାଚାଳତା

ଦୁର୍ବୋଧ ଶବ୍ଦ ଶୁଣିଲେ ମୁଖରଙ୍କ ଆସ୍ୟେ
ତାହାଙ୍କୁ ବିଜ୍ଞଜନ ଭାଳି ବସନ୍ତି ଲୋକେ ।
ବକ୍ତା ପ୍ରଭୁଙ୍କ ବିଷୟେ କହି ତେଣୁ ଚାଲେ
ନାନା ଅବାନ୍ତର କଥା, କହି ବିତ୍ତ ପାଏ  ‖ 03

କବିତା:     ସହି ଯାଅ ମୌନେ

ମାତ୍ରାଫଳାଦି କହିବେ ତ୍ରୁଟିପୂର୍ଣ୍ଣ ଭାବେ
ହ୍ରସ୍ୱ ସ୍ୱରଙ୍କୁ କହିବେ କବି "ହର୍ଷ, ହର୍ଷେ ।"
ପୁଂଲିଙ୍ଗ ଶବ୍ଦକୁ ଇଏ କହିବେ "ପୁଲିଙ୍ଗ,"
ଭାଷାଙ୍କ ଭଗ୍ନ ହୃଦୟେ ସହି ଯାଅ ମୌନେ ‖ 04

କବିତା:     ଲୁଚିବା ସ୍ଥଳ

ଶାସ୍ତ୍ରେ ବିନା ପଶି ଶୁଣାଉଥିବେ ସାଧୂକ୍ତି
ଶାସ୍ତ୍ରାର୍ଥ ବକ୍ର କରିବେ ନିଜ ଇଷ୍ଟ ଆଶେ
ଅନ୍ୟଙ୍କ କର୍ଣ୍ଣ କୁହରେ ପ୍ରଭୁ ନାମ ଘୋଷା
ପାପୀଙ୍କ ଶେଷ ଲୁଚିବାସ୍ଥଳ ଏ ସମସ୍ତ ‖ 05

କବିତା:     କର୍ତ୍ତବ୍ୟ ଶେଷ

ଅପ୍ରାପ୍ତ ସେ ମଣିଷ ଯେ ମରିବାର ପୂର୍ବେ
ତା କର୍ମ ଶେଷ କରି ପାରିଛି, ବାକି ନାହିଁ;
ଉଚ୍ଛେଷ ଉତ୍ତର ଜନଙ୍କ ନିମିତ୍ତ ଥାଏ;
ହାହା ତଥାପି ମନ - ସାରିବି ସର୍ବ କୃତ୍ୟ  ‖ 06

ଉଚ୍ଛେଷ= ଅବଶିଷ୍ଟାଂଶ; କୃତ୍ୟ= ଡ୍ୟୁଟି;

କବିତା: ବନ୍ଧନୀ .

ଛନ୍ଦ: ବସନ୍ତତିଳକା **14/2933**

ଛନ୍ଦୋବିଧାନରୁ ସୁବିଚ୍ୟୁତ କାବ୍ୟକର୍ତ୍ତା

ଲେଖାର ଶୀର୍ଷକୁ ଥିବ ଜାତିଟି ବନ୍ଧନୀରେ

ଦୋହା ସନେଟ୍ ଗଜଲ ବୈଦିକ ବା ରୁବାୟତ୍ -

କିଞ୍ଚିତ୍ ନ ଜାଣି କବିଏ ସବୁ ଲେଖୁଛନ୍ତି ‖ **07**

**(ବା)** ଉଦ୍ଘୋଷ ଯା ମନକୁ ଆସୁଛି ଲେଖୁଛନ୍ତି ‖

**(ବା)** ସେ ବନ୍ଧନୀ ଥିବ ତ ଯା ଖୁସି ଲେଖି ଦେବେ ‖

ଶୀର୍ଷ= ଶୀର୍ଷକ, **heading;** ଜାତି= ପ୍ରକାର, **type;**

କବିତା: ପ୍ରତିମା

ଶାର୍ଦ୍ଦୂଳ ଲମ୍ଫ ନ ଦିଏ ପଶୁ ମୂର୍ତ୍ତି ପୃଷ୍ଠେ

ପକ୍ଷୀ ଶିକାର ନ କରେ ଛବି-ମୂଷ କେବେ ।

ମାର୍ଜାର କାଞ୍ଚନ ଗଢା ଜଳଜେ ନ ଚାହେଁ,

କେତେ ଉଦାର ନର ମୂର୍ତ୍ତିକୁ ପୂଜି ମାଗେ ‖ **08**

**(ବା)** କେତେ ଉଦାର ନର ବାନରମୂର୍ତ୍ତି ପୂଜେ ‖

ଶାର୍ଦ୍ଦୂଳ= ବାଘ; ମାର୍ଜାର= ବିରାଡି; ମୂଷ=

ଅଣ୍ଡିରା ମୂଷା; କାଞ୍ଚନ= ସୁନା; ଜଳଜ= ମାଛ;

କବିତା:　　　ଶାଶୂ

ଶାଶୂ କହେ ନବବଧୂ ଥିଲି ବୋଧହୀନା,
କନ୍ୟା ସମା ନ କରି ମୋ ଧରୁଥାନ୍ତି ଦୋଷ,
ଅତ୍ୟନ୍ତ ମନ୍ଦ ପରପୀଡନ ଭିନ୍ନ ଦେଶେ -
ହେଲେ ନିଜେ ନିଜ ବଧୂକୁ ଦିଅନ୍ତି ଖୁଣ୍ଟା ॥ 9
(ବା) ହେଲେ ନିଜେ ନିଜ ବଧୂକୁ ଦିଅନ୍ତି ବାଧା ॥

କବିତା:　　　ଶିଶୁ

ସର୍ବେ ପ୍ରହାର ଲଭି କାନ୍ଦି ଅଛନ୍ତି ବାଲ୍ୟେ
ବିଦ୍ରୋହ କେ କରିଛି କେହି ବି ଆତ୍ମହତ୍ୟା ।
ତେବେ ଅନେକ କହି ଗର୍ହିତ କାର୍ଯ୍ୟ ହିଂସା
ଏବେ ନିଜେ ନିଜ ଛୁଆ ପିଠିରେ ବସାନ୍ତି ॥ 10

କବିତା:　　　ନାରୀପ୍ରକୀର୍ତ୍ତନ

ନାନାଦି ଶୃଙ୍ଖଳ ତଳେ ରଖି ଅଙ୍ଗନାଙ୍କୁ
ନାରୀର ପୂଜନ କଲେ ପଢି ଶାସ୍ତ୍ରବାଣୀ
ତା ଦୈନ୍ୟ ଦୂର ନ ହୁଏ, ମିଛ ମନ୍ତ୍ରପାଠେ
ହାହା ଅନନ୍ତ ଯୁଗ ଚାଲିଛି ଏହି ଶାଠ୍ୟ ॥ 11
(ବା)_ _ ଅନନ୍ତ ଯୁଗ ଚାଲିଛି ଏହି ଭାବେ

କବିତା:   ସମ୍ପ୍ରଦାୟ
କଲ୍ୟାଣ ହେତୁ ନର ଧର୍ମ କରେ ପ୍ରତିଷ୍ଠା
ସ୍ୱାର୍ଥାନ୍ଧ ପାମର ଗଢେ ତହିଁ ସମ୍ପ୍ରଦାୟ
ଧର୍ମଭ୍ରମେ ବିତରି ଦୁର୍ମତି ଧର୍ମ ନାଶେ
ହାହା ତଥାପି ଜନ ସେ କୁଜନଙ୍କୁ ପୂଜେ ॥
**(ବା)** _ _ ତଥାପି ଜନ ତା ବ୍ୟଜନେ ବିମୁଗ୍ଧ ॥ **12**

କବିତା:   ଉଦ୍ୱାହ ବନ୍ଧନ
ଉଦ୍ୱାହ ସାତ ଥର ଜୀବନସଙ୍ଗ ଲେଖା,
ସେ ସାତରୁ ପ୍ରଥମ ମଧ୍ୟ କି ଶେଷ ଏହା -
ଜାଣନ୍ତି ନାହିଁ ଜନ ଏହି ମହା ରହସ୍ୟ
ସାଥୀ ବରନ୍ତି ସଭିଏଁ ବହୁ ଜନ୍ମ ଆଶେ ॥  **13**
**(ବା)** ସାଥୀ ବରନ୍ତି ସଭିଏଁ ବହୁ ବୀର ବେଶେ ॥
ଉଦ୍ୱାହ= ବିବାହ;

କବିତା:   ସାହିତ୍ୟ
ଜାଣନ୍ତି ନାହିଁ ନିଜ ବର୍ଣ୍ଣସମଷ୍ଟି କେତେ
ମାତ୍ରା ଫଳାଦି ଲିଖନ ଭ୍ରମପୂର୍ଣ୍ଣ ସାରା ।
ଉଚ୍ଚାରଣେ ବି ରସନା ଅତି ଥଙ୍ଗ ଥଙ୍ଗ
ହେଲେ କବିଙ୍କ ବଡିମା କହିଲେ ସରେ ନା ॥ **14**
**(ବା)** ହେଲେ କବିଙ୍କ ବଡିମା ବଢି ବେଢ ପାରେ ॥

କବିତା:    ଅତୀତ

ଦେଶେ ସମାପ୍ତ ହଳଦୀ-ବନ-ବାଳହତ୍ୟା
ବୈଧବ୍ୟ-ଦଗ୍ଧ-ରମଣୀ-କୁତପ-ପ୍ରବେଶ,
ପର୍ଦ୍ଧା ଗଲାଣି ଦୁହିତା ଚଳିଲେଣି କାର୍ଯ୍ୟେ,
ହାହା ତଥାପି ଭଲ ସେ ଯୁଗଟା କହନ୍ତି ॥   **15**
**(ବା)** _ _ ତଥାପି ଭଲ ବେଳ ଥ୍ଲା କହନ୍ତି ॥
ହଳଦୀ କିଆରୀରେ ନରବଳି, ସତୀ ଦାହ, ଝିଅଙ୍କୁ ପଦାକୁ ନ
ଛାଡିବା ଆଦି ଉଠି ଥ୍ଲେ ବି;

କବିତା:    ଶିଶୁଘାତ

ପର୍ଯ୍ୟାପ୍ତ ବର୍ଷ ଧରି ମୌଳିକତାର ଗର୍ଭୁ
ନିର୍ମୁକ୍ତ ଜାତି ବରିଲା ଗଣତନ୍ତ୍ର ଦେଶେ ।
ସଦ୍ୟପ୍ରସୂତ ଶିଶୁ ଯେସନ ତା ଅବସ୍ଥା
ମୌସା ତଥାପି ଚିପି ଚାଲିଛି ତାର ତଣ୍ଟି ॥   **16**

କବିତା:    ସଦ୍ୟପ୍ରସୂତ ଖଳନୟକ

ଅକ୍ଳାନ୍ତ ଉଦ୍ୟମ କବିଙ୍କ ଗଲା ନଦୀରେ
ସଦ୍ୟପ୍ରସୂତ ଖଳନାୟକ ଅର୍ଭ ହାତେ ।
ଦୁଷ୍ଟଙ୍କ ଡାଡି ପୁଣି ମାମି ଡକାରୁ କାଳେ
ହାହା ପରାସ୍ତ କବିଏ, ମୃତମାତୃଭାଷା ॥    **17**
ସଦ୍ୟପ୍ରସୂତ= ନବଜାତ; ଅର୍ଭ= ଛୁଆ,;

କବିତା:　ପ୍ରେମାନୁବନ୍ଧ
ଯେ ପ୍ରେମରେ ପଡିବ ହାରିବ ଅନ୍ନ ନିଦ୍ରା
ସଂସାର କର୍ମ ଯିବ ଚାଲିବ ସେହି ଚିନ୍ତା
ଅଧ୍ୟାତ୍ମ ନାଶ ସହ ବୌଦ୍ଧିକତା ସମାପ୍ତି
ହାହା ତଥାପି ନର ସେ ନରକେ ଚରନ୍ତି ॥ **18**
**(ବା)** _ _ ତଥାପି ତହିଁ ନାଶ ହୁଏ ମନୁଷ୍ୟ ॥

କବିତା:　ଯୁଦ୍ଧେ ଦ୍ୟୁଲୋକ
କେ ସ୍ୱର୍ଗ ଯାଇଛି ରଣେ ମରି ଦେଖିଲା କେ,
କେ ସେଠୁ ଫେରି କହିଲା ଅଛି ହୃଷ୍ଟ ଚିତ୍ତେ ।
କେ ଗ୍ରନ୍ଥକାର ଶୁଣି ନାହିଁ ଶହୀଦ୍‌ର ଭାଷା,
ହାହା ତଥାପି ତରୁଣେ ସମରେ ଚଳନ୍ତି ॥ **19**

କବିତା:　ସଂସାର ଦୁଷ୍କର
ଆବାଲ୍ୟ ଲେଖି - ମିଛ ସଂସୃତି ପୁତ୍ର ଭାର୍ଯ୍ୟା,
ସର୍ବେ ଅନାଥ, ସବୁ ଦୁର୍ଜୟ ଶକ୍ତି ହାତେ,
ମିଥ୍ୟା ଧନାର୍ଜନ, ମନ, ପ୍ରତିଭା, ପ୍ରଭାବ,
ହାହା ତଥାପି ଶିଶୁଜନ୍ମ ଭବେ କରାନ୍ତି ॥ **20**
**(ବା)** _ _ ବ୍ୟଥାର୍ଣ୍ଣବକୁ ଜନ୍ମ କରନ୍ତି ପୁତ୍ର ॥ ସଂସୃତି, ଭବ= ସଂସାର;

କବିତା:     ଅଶ୍ରାନ୍ତ ଲେଖନ
କାମାଦି ତେଜ କହି କାବ୍ୟବିତାନ ଲେଖା
ଚାଲେ ସହସ୍ର ଶତବର୍ଷରୁ ମର୍ତ୍ତ୍ୟ ଭୂମେ ।
ନା ସେ ନିଜେ କି ପଢି କେହି ଦିଏ ଗୁରୁତ୍ୱ
ହାହା ତଥାପି କବି ଲେଖୁଛି ସେହି ଭାଷା ॥ **21**
**(ବା)** _ _ ତଥାପି କବି ଲେଖୁଛି ସେ ଥକେ ନା ॥
ବିତାନ= କୁଢ, ଗଦା;

କବିତା:     ଉତ୍ସାହଦାନ
ଯୁଦ୍ଧେ ସୁରାଳୟ ମଲେ, ଜିତିଲେ ଧରିତ୍ରୀ -
ଲେଖେ ସିନା କବି ନିଜେ ସମରେ ନ ଯାଏ ।
ଏହା ଅନେକ ଯୁଗ ଦେଖି ବି ବେନି ନେତ୍ରେ
ହାହା ତଥାପି ଅସି ତୋଳୁଛି ମୂଢ ଯୋଦ୍ଧା ॥  **22**
**(ବା)** _ _ ତଥାପି ସମରେ ମରୁଛନ୍ତି ଯୋଦ୍ଧା ॥
ସୁରାଳୟ= ଦେବପୁର, ସ୍ୱର୍ଗ;

କବିତା:     ସମ୍ଭୋଗ
ଏ ରୁଗ୍ଣ ଖଞ୍ଜ ଶୁନ ଲାଞ୍ଜକଟା ମୁମୂର୍ଷୁ
ଦେହେ ସହସ୍ର ଗଳିତ କ୍ଷତ ଚର୍ମସାରା
ଶୂନ୍ୟୋଦରେ ବି ସରମା ପଛରେ ପ୍ରଧାବେ
କେଡେ ନୃଶଂସ ମଦନ, ପ୍ରହତେ ପ୍ରହାରେ ॥   **23**
**(ବା)** କି କ୍ରୁର ସେ ମଦନ ମାରୁଛି ମୃତ୍ୟୁ ଅନ୍ତେ ॥
ଶୁନ= କୁକୁର; ଖଞ୍ଜ= ଲେଙ୍ଗୁଡ଼; ସରମା= କୁକୁରୀ; ପ୍ରହତ= ମୃତ; ଅନ୍ତ= ମୃତ୍ୟୁ ରଚନା ଭର୍ତ୍ତୃହରି;  ଅନୁବାଦ ଲଲାଟେନ୍ଦୁ କବି

କବିତା: ତୃଷ୍ଣା

ଭିକ୍ଷାନ୍ନ ଲବ୍ଧ ରସହୀନ ଥରେ କଦାଚିତ୍,

ଶଯ୍ୟା ମହୀ, ପରିଜନ ସ୍ୱଶରୀର ମାତ୍ର ।

ବସ୍ତ୍ରାର୍ଥ ଜୀର୍ଣ୍ଣ ମଳଯୁକ୍ତ ବିଦୀର୍ଣ୍ଣ କନ୍ଥା,

ହାହା ସିଏ ବି ଅଭିଳାଷର ବନ୍ଦିଶାଳେ ॥ **24**

**(ବା)** _ _ ତଥାପି ଅଭିଳାଷ ନ ଛାଡି ଯାନ୍ତି ॥

ଜୀର୍ଣ୍ଣ= ପଚା; ବିଦୀର୍ଣ୍ଣ= ଭଲ କରି ଚିରା;

ରଚନା ଭର୍ତ୍ତୃହରି, ଅନୁବାଦ ଲଲାଟେନ୍ଦୁ କବି

କବିତା: ଜୀର୍ଣ୍ଣ ତରୁ

ଏ ଜନ୍ମ ଯା ନିକଟୁ ସେ ବହୁ କାଳୁ ଦୂରେ

ଯା ସଙ୍ଗରେ ବଢିଲୁ ସେଥିରୁ ଅଳ୍ପ ବାକି ।

ଅର୍ଦ୍ଧେକ ଆମ ଅନୁଜାତ ଗଲେ ପ୍ରବାସେ

ଆମେ ବି ଜୀର୍ଣ୍ଣ ତରୁ ଏ ବହତୀର ଧାରେ ॥ **25**

**(ବା)** ଆମେ ବି ଜୀର୍ଣ୍ଣ ତରୁ ଏ ଖର ନୀର ଧାରେ ॥

**(ବା)** ଆସନ୍ନଲମ୍ବନ ମହୀଜ ମୁଁ ସିନ୍ଧୁ ଧାରେ ।

ଅନୁଜାତ= ପରେ ଜନ୍ମିତ, ସାନ; ବହତୀ= ନଦୀ;

(ଲମ୍ବନ= ପତନ, **falling**; ମହୀଜ= ଗଛ; ସିନ୍ଧୁ= ନଦୀ;)

- ଭର୍ତ୍ତୃହରି, ଅନୁବାଦ ଲଲାଟେନ୍ଦୁ କବି

କବିତା:     ଋଣ

ଶୈଶବ୍ୟ ବାଲ୍ୟ କଟିଲା ଚପଳ ସ୍ୱଭାବେ
ମାନୁଷ୍ୟ ଯୌବନ ଗଲା ଧନ ସଂନିବେଶେ **।**
ଏତେ କୁସୀଦ ବହି ଦୁଷ୍କର ହେବ ଯାତ୍ରା**,**
ଏବେ ତ ବୃଦ୍ଧବୟସେ କର ଦାନ ସେବା **॥ 26**
**(**ବା**)** ଏବେ ତ ଶେଷ ଆବକାଶ ତୁ ଲାଗ ପୁଣ୍ୟେ **।**
ମାନୁଷ୍ୟ**= manhood,;** କୁସୀଦ**= loan;**

କବିତା:     ବିଜ୍ଞାନନିନ୍ଦନ

ବିଜ୍ଞାନ ମାନବକୁ ଟାଣୁଛି ନାଶମାର୍ଗେ **-**
ଏହା କହନ୍ତି ହତବୁଦ୍ଧି ଗୁରୁପ୍ରଭାବେ **।**
ଭାଳନ୍ତି ନାହିଁ ଥରଟେ ଗୁରୁଜୀଙ୍କ ମଧ
ବିଜ୍ଞାନ ଆଶ୍ରୟ ବିନା ଅନିବାର୍ଯ୍ୟ ମୃତ୍ୟୁ **॥ 27**
**L. Kabi     202403011414**

କବିତା:     ମୃତ୍ୟୁ
ଆପଦ୍**-**ଜରା**-**କଳୁଷ**-**ପୂରିତ ମର୍ତ୍ତ୍ୟଲୋକେ
ସଂଘର୍ଷପୂର୍ଣ୍ଣ ସମୟେ**,** ପ୍ରତିପନ୍ନ ମୃତ୍ୟୁ
ନେତ୍ରାଗ୍ରତଃ ନିରତ ଦେଖି ବିମୂଢ ବୃଦ୍ଧ
ପଶ୍ଚାତ୍ ଥିବାରୁ ତରୁଣଙ୍କୁ ଭଲେ ଦିଶେ ନା **॥ 28**

## ସଂଗୀତ ଶିକ୍ଷା

**ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)**

**221/211/121/121 + 22**

ସଂଗୀତ ଲେଖି ସବୁ ସୁନ୍ଦର ଲେଖି ନାହିଁ
ଏକାଗ୍ର ଲେଖି ମୁଁ ଅସୁନ୍ଦର ଲେଖି ନାହିଁ ।
ନାନାଦି କାବ୍ୟ ରଚି ନନ୍ଦନିଦାନ ଦାନେ
ମୋ ଗ୍ରନ୍ଥ ପୂର୍ଣ୍ଣ କବିତାର ବିତାନ ତାନେ **॥29॥**

ନନ୍ଦ= ଆନନ୍ଦ; ନିଦାନ= ନିର୍ଭ୍ରମତା; ବିତାନ= ସ୍ତୁପ, କୁଦ, ଗଦା, **heap,** ବହୁଳତା;

ଅଭ୍ୟାସ ଯେ କରିବ ଛନ୍ଦର ବର୍ଣ୍ଣମାତ୍ରା
ପ୍ରସ୍ତାର ସର୍ଜନ ସହ ଦ୍ୱିମୟେ ବିଚିତ୍ରା ।
ସାନନ୍ଦ ଆସ ଶନିବାର ନିବାର ବାର
ତେବେ ମୁଁ ହେବି ବସୁଧାର ସୁଧାରଧାର **॥30॥**

ବର୍ଣ୍ଣ= ଲଘୁ ଓ ଗୁରୁ ବର୍ଣ୍ଣ; ମାତ୍ରା= ଉଚ୍ଚାରଣକାଳର ଆକଳନ ବିଧି; ପ୍ରସ୍ତାର= ଛନ୍ଦୋଚୟର **spread- sheet;** ଦ୍ୱିମୟ= **binary numbers;** ନିବାର= ଅଙ୍କୁଶ, **restriction;** ଧାର= ଧାରକ, ସହାୟକ, ସ୍ରୋତ, ବିଚ୍ଛୁରଣ;

୨୦୨୧୧୦୨୭୧୬୦୫

ଅସରା ନିରାଶା

**ଛନ୍ଦ: ବସନ୍ତତିଳକା 14/2933**

ତଗଣ ଭଗଣ ଜଗଣ ଜଗଣ + ଗୁରୁ

**221/211/121/121 + 22**

ଉକ୍ତା ବସନ୍ତତିଳକା ତଭଜା ଜଗୌ ଗଃ

====================

୨୦୨୧୧୦୨୭୧୬୦୫

====================

ସମାପ୍ତ